କବି

# ବିଶ୍ୱନାଥ ପ୍ରସାଦ




ଇଣ୍ଡିଆନ୍ ମେଟାଲସ୍ ପବ୍ଲିକ୍ ଚାରିଟେବୁଲ୍ ଟ୍ରଷ୍ଟ ପକ୍ଷରୁ
ଓଡିଆ ସାହିତ୍ୟର ଶ୍ରେଷ୍ଠ କୃତି ନିମନ୍ତେ

**୩୩ତମ ବାର୍ଷିକ ପୁରସ୍କାର ୨୦୧୨**

ପାର୍ବଣ ଅବସରରେ ପ୍ରକାଶିତ

# କବି

# ବିଶ୍ୱନାଥ ପ୍ରସାଦ

ଉପସ୍ଥାପନା

ଡ.ଶ୍ରୀନିବାସ ଉଦ୍‌ଗାତା, ବିଦ୍ୟାବାଚସ୍ପତି

("ପଦ୍ମ ଶ୍ରୀ" ସମ୍ମାନାଲଙ୍କୃତ)

ଆତ୍ମପ୍ରକାଶନୀ

କବିକୁଟୀର, ବଲାଙ୍ଗୀର

# କବି

# ବିଶ୍ୱନାଥ ପ୍ରସାଦ

(ହିନ୍ଦୀ କବିତା କ୍ଷେତ୍ରର ପ୍ରତିଭାଧର କବି ଶ୍ରୀ ବିଶ୍ୱନାଥ ପ୍ରସାଦ ତିଓ୍ୱାରୀଙ୍କର
" କବି ନେ କହା " କବିତା ସଙ୍କଳନର ସ୍ୱନିର୍ବାଚିତ କିୟଦଂଶ)

ଉପସ୍ଥାପନା -ଡ. ଶ୍ରୀନିବାସ ଉଦ୍‌ଗାତା

ବର୍ଣ୍ଣ ସଂଯୋଜନ-ଗୁଲୁ ଗ୍ରାଫିକ୍ସ,ବଲାଙ୍ଗୀର
ମୁଦ୍ରଣ-ଜୟଶ୍ରୀ ପ୍ରିଣ୍ଟର୍ସ,ବଲାଙ୍ଗୀର
ପ୍ରକାଶ କାଳ-୨୦୧୨
ସହଯୋଗ ରାଶି-୨୦/-ଟଙ୍କା ମାତ୍ର
ଆତ୍ମପ୍ରକାଶନୀ, ବଲାଙ୍ଗୀର କର୍ତ୍ତୃକ ଗୌରବାବହ
ଚଉତିରିଶତମ ଶାରଳା ପୁରସ୍କାରସମର୍ପଣ ସମାରୋହ ଅବସରରେ
ଉତ୍କଳ ଚାରିଟେବଲ ଟ୍ରଷ୍ଟ
ଅର୍ଥାନୁକୂଲ୍ୟ
ତଥା
ଶାରଳା ପୁରସ୍କାର ଉପଦେଷ୍ଟା ପରିଷଦର ଅନୁମୋଦନ କ୍ରମେ
ପ୍ରକାଶିତ

୦ ୦



## ପ୍ରାକ୍ କଥନ

......ଜଗତଜନନୀ ମାତା ଶାରଳା ଶାରଦା ସରସ୍ୱତୀ, ପରମପୁରୁଷ ଅନାଦି ଅଣାକାର ପୁରୁଷୋତ୍ତମ, ଆପଣମାନଙ୍କର ଅପାର କରୁଣାରୁ, ପ୍ରଣମ୍ୟା ଅନୁପ୍ରେରିକା ବିଭୁଲୀନା ଇଳା ପଣ୍ଡାଙ୍କର ମହତ ପରିକଳ୍ପନା ତଥା ଅଧକ୍ଷ ପୃଷ୍ଠପୋଷକ ଇଂ.ଡକ୍ଟର ବଂଶୀଧର ପଣ୍ଡାଙ୍କର ଅକୁଣ୍ଠ ସହଭାଗୀତାରେ ଆଜି ଆମେ ପ୍ରତିବର୍ଷପରି ମହତ୍ୱପୂର୍ଣ୍ଣ ଶାରଳା ପୁରସ୍କାର ର ଚଉତିରିଶ ତମ ସମର୍ପଣ ସମାରୋହ ଆପଣମାନଙ୍କର ଉଦାର ଉପସ୍ଥିତିରେ ପାଳନ କରି ଗୌରବ ଅନୁଭବ କରୁଛୁଁ।

ଆମମାନଙ୍କ ସକାଶେ ପରିତୋଷ ଓ ଗୌରବର କଥା ଯେ ଆଜି ଏହି ଉପଲକ୍ଷରେ ହିନ୍ଦୀ ସାରସ୍ୱତ ଜଗତର ସତ୍‌ସ୍ରଷ୍ଟାପୁରୁଷ, ଶିକ୍ଷାବିତ, ଭାରତୀୟ ବାଙ୍ମୟର ଭାବମର୍ମଜ୍ଞ , ବହୁପାଠୀ, ବ୍ୟାସ ସମ୍ମାନ,ସାହିତ୍ୟ ଭୂଷଣ,ପୁଶ୍କିନ ସମ୍ମାନ, ସରସ୍ୱତୀ ସମ୍ମାନ ଆଦିଆଦି ମହତ୍ୱପୂର୍ଣ୍ଣ ପୁରସ୍କାର-ସମ୍ମାନ ବିମଣ୍ଡିତ, ଅତୁଟ ରୀତିରେ ଆଜି ୧୩୫ ଭାଗ ପ୍ରକାଶିତ ହୋଇ ସାରିଥିବା "ଦସ୍ତାବେଜ" ସାହିତ୍ୟ ପତ୍ରର ସୁଯୋଗ୍ୟ ସମ୍ପାଦକ, ବହୁ ଅନୁପମ କବିତାର ସ୍ରଷ୍ଟା, ଦେଶ-ବିଦେଶଯାତ୍ରାର ଆତ୍ମୀୟ ଅନୁଭବୀ , ସମ୍ପ୍ରତି କେନ୍ଦ୍ର ସାହିତ୍ୟ ଅକାଦେମୀର ଉପସଭାପତି ଭାଇ

# କବି ବିଶ୍ୱନାଥ ପ୍ରସାଦ ଠ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

ବିଶ୍ୱନାଥ ପ୍ରସାଦ ତିୱାରୀ ସମାରୋହର ଶୋଭା ମଣ୍ଡନ କରି ମୁଖ୍ୟ ଅତିଥିଭାବରେ ଯୋଗ ଦେଇଛନ୍ତି । ତାଙ୍କର ବିବିଧ କାବ୍ୟକୃତି ରୂପାନ୍ତରିତ ହୋଇ ପ୍ରାଚ୍ୟ-ପାଶ୍ଚାତ୍ୟ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି ।

ସବୁଠାରୁ ବଡ଼ କଥା ହେଲା ସେ ଜଣେ ନିଷ୍କପଟ ମିତ୍ରବତ୍ସଳ ବ୍ୟକ୍ତିତ୍ୱର ଅଧିକାରୀ । ରାଷ୍ଟ୍ରଭାଷା ହିନ୍ଦୀର ବିଶାଳ ସର୍ଜନା କ୍ଷେତ୍ର , ମୁଁ ପ୍ରମୁଦିତ ଯେ ମୋତେ ଅପ୍ରତିମ ଆଦର ଦେଇଛି । ହିନ୍ଦୀର ବିଶାଳ ସାରସ୍ୱତ ମଂଚର ସହଭାଗୀତାରେ ମୁଁ ଆଉ କିଛି ହେଉ ନ ହେଉ ଏକ ମିତ୍ରମୟ ଭାରତବର୍ଷ ପାଇଛି । ଗୋଟାଏ କଥା ଅନୁଭବ କରିଛି ଯେ ସର୍ଜନାର ପାବନଭୂମିରେ ସକାରାତ୍ମକ ମତାନ୍ତର ରହିଛି ସିନା ତାହା ମନାନ୍ତରର କାରଣ ହୋଇନାହିଁ । ସାହିତ୍ୟର ଧର୍ମ ଯଦି ପ୍ରତି ଚିତ୍ତକୁ ସହିତତା-ସୁମନଶୋଭିତ କରିବା, ତାହାପ୍ରତି ଆସକ୍ତ ହେବା ଭାଗବତୀୟ ରତି-ଆସକ୍ତି-ପ୍ରାପ୍ତିର ଧାରାରେ ପରମପ୍ରାପ୍ତି ବୋଲି ବିଶ୍ୱାସ କରୁଛି । ତାହା ଜଣେ ସତ୍‌ସାରସ୍ୱତପୁରୁଷର ଧର୍ମ । ଆଜି ଆମ ଗହଣରେ ଶ୍ରୀ ତିୱାରୀଙ୍କୁ ପାଇ ମୁଁ ଆନନ୍ଦିତ ଓ ଏହି ଅବସରରେ ସଂସ୍ଥା ଓ ଆପଣମାନଙ୍କ ପକ୍ଷରୁ ସ୍ୱାଗତ କରୁଛି ।

କବିର ଅସଲ ପରିଚୟ କବି ବ୍ୟତୀତ ଆଉ କିଛି ହୋଇ ପାରିବ ନାହିଁ । ଜଣେ ଭଲ କବିର ପରିଚୟସ୍ୱରୂପ ଯାହା ଶ୍ରୀ ତିୱାର କହିଛନ୍ତି,ତାହା ତାଙ୍କରି ଉଦ୍ଦେଶ୍ୟରେ ଉଦ୍ଧାର କରୁଛି -

"ସେଇ ଭଲ କବିତା ଲେଖିବ
ଭଲ କବି ହୋଇଥିଲେ ।
ଯେ ଯେତେବେଳେ ଲେଖୁଥିବ
ସବୁଠାରୁ ଭଲ କବିତା
ସେତେବେଳ ସେ ହୋଇଥିବ
ଜଣେ ଭଲ ମଣିଷ , ଅବଶ୍ୟ ।

ଯୋଉ ଦୁନିଆଁରେ ଲେଖା ହେବ ଭଲ କବିତା
ସେଇ ହେବ ଭଲ”
କବିତା ଶବ୍ଦ ଆଉ ଅର୍ଥ ନୁହେଁ
ତାହା ସବୁଠୁଁ ଏକ ସୁନ୍ଦର ସ୍ୱପ୍ନ
ସବୁଠାରୁ ଭଲ ମଣିଷର ।”

ଆପଣ ବି ହୃଦ୍‌ବୋଧ କରିବେ ଯେ କବି ଶ୍ରୀ ତିଓ୍ୱାରୀଙ୍କର ଉଚ୍ଚାରଣ ସହଜ ସରଳ ଓ ସ୍ୱଷ୍ଟ ଯାହା ବାକ୍ ରୀତିର ବିଭୂତି । ତେବେ, ଅଭିବ୍ୟକ୍ତିରେ ଅନ୍ତର୍ନିହିତ ତତ୍ୱ ଅନୁରୂପ ସରଳ ନୁହେଁ । ବିଦଗ୍ଧ ପାଠକ-ପାଠିକା ଅନୁଭବ କରିପାରିବେ ପରୋକ୍ଷରେ ଅଭିବ୍ୟକ୍ତ ଜୀବନ ଦର୍ଶନ , ନଶ୍ୱର ଯେତିକି ଶାଶ୍ୱତ ବି ସେତିକି , ସମକାଳୀନ ସତ୍ୟ-ଯଥାର୍ଥ ସହିତ ସାକ୍ଷାତ୍‌କାର ହେବ ଆପଣଙ୍କର, ଆଚାର୍ଯ ଶଙ୍କରଙ୍କର ଦର୍ଶନ ହେବ , “ମୋହ ମୁଦ୍ଗର” ସୂତ୍ରରେ ନୁହେଁ, ତଥାଗତ ନିର୍ବାଣର କଥା ନୁହେଁ ଜୀବନ ଗାଥା ଶୁଣେଇବାକୁ ପ୍ରକଟିତ ହେବେ; ଭବଭୂତୀଙ୍କର କବିର ସାଭିମାନୀ ଦାମ୍ଭିକତା ବ୍ୟକ୍ତ କରିବାର ଆସ୍ଥା ଓ ଅଭିଳାଷ ସହିତ ବି ଭେଟ ହେବ ।

ତେବେ, ସେମାନେ ରୀତିରେ ଆଳଙ୍କାରିକ ନୁହନ୍ତି । ଚିତ୍ରକଳ୍ପ , ରୂପକଳ୍ପ ଆଦି କିଛି ନୁହନ୍ତି ଓ ସୀକାର କରିବାକୁ ମନ କରିବେ ଯେ ତାହା ଭାବକଳ୍ପ । ଅର୍ଥବୋଧ ହେତୁ ଅଭିଧାନାଶ୍ରିତ ହେବାକୁ ପଡ଼ିବନାହିଁ ଆପଣଙ୍କୁ କିନ୍ତୁ ଯାହା ଶବ୍ଦରେ ପ୍ରକାଶିତ ନହୋଇ ବି ଭାବରେ ରହିଥାଏ ସେପରି କିଛି । ମୁଁ ତାର ଲକ୍ଷଣ ପ୍ରକାଶ କରି ନପାରି “ଭାବକଳ୍ପ” ବୋଲି କହିଛି । ତାହା ଶାସ୍ତ୍ରସମ୍ମତ ଶବ୍ଦ ନୁହେଁ । ଅନେକ ଅନେକଙ୍କ ଭିତରେ ମହାକବି କାଳିଦାସ (କୁମାର ସମ୍ଭବମ୍), ବାଣଭଟ୍ଟ (କାଦମ୍ବରୀ) ତଥା ସ୍ୱଭାବ କବି ଗଙ୍ଗାଧର ସେପରି ଅଭିନବ ପ୍ରୟୋଗ କରିଛନ୍ତି । ସେହି ରୀତି ଭାଇ ବିଶ୍ୱନାଥଙ୍କର ସୂକ୍ଷ୍ମ-ସରଳ ସଂକ୍ଷିପ୍ତ ଉଚ୍ଚାରଣରେ ମୋତେ ବି ଛୁଇଁଛି । କେବଳ ଛୁଇଁନାହିଁ , ଚିତ୍ତ ଚହଲେଇ ସ୍ତବ୍ଧ ତଟସ୍ଥ ବି କରିଛି ।

ଏହା ଶାସ୍ତ୍ରୀୟ ବିବେଚନାର କ୍ଷେତ୍ର ନୁହେଁ ବୋଲି ପଲ୍ଲବିତ କରିବାକୁ ମନ କରିନାହିଁ । ଆପଣମାନେ ତତ୍ତ୍ୱବୋଧୀ ଓ ଭାବମର୍ମଜ୍ଞ, ତେଣୁ , ମୋର ବି କିଛି ସଂଶୟ ନାହିଁ । ଶ୍ରେଷ୍ଠ ବିଚାରକ ବିବେକୀ ପାଠକଭାବରେ କାଚ ଆଉ ହୀରାର

ଫରକ ବାରି ଦେବାକୁ ଆପଣଙ୍କୁ ବେଳ ଲାଗିବ ନାହିଁ , ବିଶ୍ୱାସ କରୁଛି ।

କବି ଶ୍ରୀ ତିୱାରୀ ଶାରଳା ପୁରସ୍କାର ସମର୍ପଣସ୍ୱରୂପ ଏହି ଅଭ୍ୟର୍ଚ୍ଚନା ଅର୍ଚ୍ଚନା ପର୍ବର ସହଭାଗୀ ହୋଇ ଆସିଛନ୍ତି । ଏହି ଅବସରର ସ୍ମାରିକାଭାବରେ ସମୀଚୀନ କିଛି କରିବାରମନ କଲେ ଅତୁଳ ମନର ଅଧିକାରୀ ଇଂ ଡକ୍ଟର ପଣ୍ଡାଙ୍କ ସମେତ ପରିଷଦର ବିବେକୀ ସଦସ୍ୟମାନେ । ଆଉ, ସେହି ସୂତ୍ରରେ କବି ଶ୍ରୀ ତିୱାରୀଙ୍କର ପ୍ରସିଦ୍ଧ କବିତା ସଂକଳନ "କବି ନେ କହା" ର କିଛି କବିତା ନେଇ , ତାର ଓଡ଼ିଆ ରୂପନ୍ତରିତ ରୂପରେ ଏହି ସୀମିତ କଳେବରର ପୁସ୍ତିକା ପ୍ରକାଶିତ ହୋଇଛି । ଏହା ଚଳିତ ପର୍ବର ଏକ ନବୀନ ସଂଯୋଜନା, ସବୁ ବର୍ଷ ଅନୁରୂପ କିଛି ହେବ, ତାର କିଛି ମାନେ ନାହିଁ । ହୋଇପାରେ ମନୋଜ୍ଞ ଓ ଅର୍ଥପୂର୍ଣ୍ଣ ଆଉ କିଛି ହେବ । ଆପଣମାନଙ୍କୁ ଆମର ଅତିଥିଭାବରେ ସମ୍ମିଳିତ ହୋଇଥିବା ଜଣେ ସତ୍‌କବି ର ପରିଚୟ ପ୍ରଦାନ କରିବା ହିଁ ପରିଷଦର ଅଭିଳାଷ ।

ଉତ୍କଳ ଚାରିଟେବଲ ଟ୍ରଷ୍ଟ ଏ ପ୍ରକାଶନ ହେତୁ ଆର୍ଥିକ ଅନୁଦାନ ଦେଇ ସହଯୋଗ କରିଛନ୍ତି । ଏ ଟ୍ରଷ୍ଟର ଅଧକ୍ଷା ଶ୍ରୀମତୀ ପାରମିତା ମହାପାତ୍ର ଙ୍କ ପ୍ରତି ଅଶେଷ କୃତଜ୍ଞତା ।

ପରିଷଦ ମୋତେ ଏ କର୍ମ-ସମ୍ପାଦନର ଯୋଗ୍ୟ ବୋଲି ବିବେଚନା କରିଥିବା ତଥା ଟ୍ରଷ୍ଟ ପ୍ରକାଶନ-ସହଭାଗୀ ହୋଇଥିବା ହେତୁ , ମୁଁ "ଆତ୍ମପ୍ରକାଶନୀ"ର ଅଧକ୍ଷଭାବରେ କୃତଜ୍ଞ ।

ଏ ପୃଥ୍ୱୀ ମଧୁକ୍ଷରା ହେଉ । କବିମାନଙ୍କର ସପ୍ନ ସାର୍ଥକ ହେଉ ।....

ଶ୍ରୀନିବାସ ଉଦ୍‌ଗାତା

ଡକ୍ଟର ଶ୍ରୀନିବାସ ଉଦ୍‌ଗାତା, ବିଦ୍ୟାବାଚସ୍ପତି
(ପଦ୍ମ ଶ୍ରୀ ସମ୍ମାନାଲଂକୃତ)
ସଦସ୍ୟ, ଶାରଳା ପୁରସ୍କାର ଉପଦେଷ୍ଟା ପରିଷଦ

"କବି ନେ କହା "ର ନିର୍ବାଚିତ କିୟଦଂଶ



କବି

ବିଶ୍ୱନାଥ ପ୍ରସାଦ

୦ ୮ ୦

## ସୂଚୀ

## ଉତ୍ତମ ଦୁନିଆଲାଗି

୦

ପଳେଇ ଯାଉଛି ରାତି ଲମ୍ବାଲମ୍ବା କଦମ ପକେଇ
ଆଉ ଗ୍ରହ ନକ୍ଷତ୍ର ଚକ୍ ଚକ୍ କରୁଛନ୍ତି କୁହୁଡ଼ିରେ ।

ତମେ ନ ଚାହିଁଲେ ବି ଏ ଦୁନିଆ ବଦଳିବ

କିରଣ ଫୁଟିବ ସ୍ଫୁଲିଙ୍ଗ ଉଠିବ
ଧୀରେଧୀରେ ତରଳି ଯିବ ବରଫପରି
କରୁଣାପରି ପ୍ରବାହିତ ହେବ କବିତା
ଏଇ ମରୁଭୂଇଁରେ
ବରଗଛପରି ଖେଳେଇ ହୋଇଯିବ ଅର୍ଥ-ଛାୟା

ସେସବୁ ଦୁଶିବ ନାଇଁ ,
ଯାହା ଦେଖି ନାରୀମାନେ ସକସକ କାନ୍ଦନ୍ତି
ଆଉ ପିଲାମାନେ ଶେଯଭିତରେ ଲୁଚି ଯାଆନ୍ତି

ତମେ ନ ଚାହିଁଲେ ବି ଏ ଦୁନିଆଁ ବଦଳି ଯିବ

୦ ୦

କବି ବିଶ୍ୱନାଥ ପ୍ରସାଦ ଠ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

ଅନେକ ଥର ଏ ସହର ପୀଡ଼ାରେ ଗାଇଛି
ଯାହାଙ୍କର ଜିଭ ନଥିଲା ସେମାନଙ୍କ ପାଟିରେ ଚିଲ୍ଲେଇଛି
ରକ୍ତକୁ କାଳି କରି ଆଉ କାଳି କୁ ରକତ କରି
ଅନେକ ଥର ଆକ୍ରମଣ ହୋଇଛି କବିତାର ସହର ଉପରକୁ
ଆମେ ସେଇ ଅବେଳକୁ ମନେ ରଖିବୁଁ
ଏଇ ଭୟକୁ, ଅପରାଧ ଆଉ ଆତଙ୍କକୁ
ବିଳାସ ଆଉ ଲୁହକୁ।

ତମେ ନ ଚାହିଁଲେ ବି ଏ ଦୁନିଆଁ ବଦଳିଯିବ।

ଶାଶ୍ୱତ କୁମାରୀ ଧରିତ୍ରୀରୁ ଗଜୁରି ଆସିବେ ଲୁଚିଲା ମୁହଁସବୁ
ଲୟଛନ୍ଦରେ କୁଦି ବୁଲିବେ ମୃଗଶାବକ
ଟେଙ୍କ୍, ସଂଗୀନ, ପ୍ରକ୍ଷେପାସ୍ତ୍ର ମଝିରେ
ଅନ୍ତରିକ୍ଷରର ଅନ୍ତ ବିସ୍ତାରରେ ସନ୍ତରିତ
ଅନ୍ଧାରରେ ପକ୍ଷୀପ୍ରାୟ ରାବ କରି
ମୁଖରିତ ହେବେ କବିତା।

ଯୋଉମାନେ କବିତା ଲେଖନ୍ତି ଆଉ ପ୍ରେମ କରନ୍ତି
ସେମାନେ ପୃଥ୍ୱୀକୁ ଆଉ ଟିକିଏ ଚଉଡ଼ା କରନ୍ତି
ଆଉ ଟିକିଏ ଗଭୀର , ଆଉ ଟିକିଏ କୋମଳ।
୦୦
ବଲାଙ୍ଗୀର
୭.୭.୨୦୧୨

## କନାଟ ପ୍ଲେସ

୦

ଲୋକେ ଏମିତି ଛୁଟି ଚାଲିଛନ୍ତି
ଯେ ମନେ ହେଉଛି କିଛି ଘଣ୍ଟାରେ
ଖାଲି ହୋଇଯିବ କନାଟ ପ୍ଲେସ ।

ସବୁରି ଆଶା ଅଛି ଯେ
ସମସ୍ତଙ୍କୁ ଗାଡ଼ି ମିଳିଯିବ
ସବୁରି ଡର ଅଛି ଯେ ଗାଡ଼ି ଛାଡ଼ି ଦେବ ।

ସବୁରି ପେଡ଼ି ପୁଟୁଳା ଅଛି
କାହା ପାଖରେ ବି ସମୟ ନାହିଁ ।

କାହାକୁ କହିବି ଯେ ଚାଲ
ମୋ ସାଙ୍ଗରେ ଚାଲ
ସମସ୍ତଙ୍କୁ ଜଣା ଯେ ଏଇନେ
ପଡ଼ିବ ଏଟମ୍ ବମ୍
ସମସ୍ତେ ଜାଣନ୍ତି
ଏଇନେ ବା ଆଉ କେବେ ନୁହେଁ ।

ମୋର ଡରବରିଆ କିଛି ନାହିଁ
ଆରାମ ଆରାମରେ ଧରି ନେବି
ମୋର ଶେଷ ବସ୍
ଆଉ ବସ୍‌ରେ ଲୋକ ମିଳିଯିବେ
ଯୋଉମାନଙ୍କର ହରବର କିଛି ନାଇଁ ।
ମୁଁ ଜାଣିଛି ଯେ ଏଇ ଭୟାନକ ମୁହୂର୍ତ୍ତରେ
ବଂଚି ଯିବାର ରାହା
ସେଇ ପଳେଇ ଚାଲିଥିବା ଲୋକଙ୍କୁ
ମୁଁ ବଢେଇ ଦେବାକୁ ଚାହୁଁଛି
ଲୁଚିବାର ରାହା ।

ତେବେ କରିବି କଣ
ସେମାନେ ତ ଏକଲା-ଏକଲା
ଜିଇଁବାକୁ ଚାହାନ୍ତି !
୦ ୦ ୦
ବଲାଙ୍ଗୀର
୭.୭.୨୦୧୨

## ଗାଏବ ହେଉଛନ୍ତି ଲୋକେ

ଠ

ନବଯୁବକ,
ମୁଁ ସେଇ ମନ୍ଦ ଖବର ନେଇ ଆସିଛି
ଯେ ଲୋକେ
ଗାଏବ ହୋଇ ଚାଲିଛନ୍ତି ।

ସେ ଖବର ଖବରକାଗଜରେ ବାହାରି ନାହିଁ
ଆଉ ଗୁପ୍ତଚରମାନେ ବି କିଛି କହୁ ନାହାନ୍ତି ।
ରାଣୀ ଗୋଲାପ ଜଳରେ ଗାଧୋଉଛି
ଆଉ ରାଜକୁମାର
ଆଗାମୀ ଶତାବ୍ଦୀଯାଏଁ ଶୋଇ ଯାଇଛି ।

କିନ୍ତୁ, ଖବର ସେଇଆ ନୁହେଁ

ମୁଁ ଆପଣା ଆଖିରେ ଦେଖିଛି
ରାଜଧାନୀରେ

କବି ବିଶ୍ୱନାଥ ପ୍ରସାଦ ଠ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

ଗୋଟାଏ ଅଦୃଶ୍ୟ ହାତ ସେମାନଙ୍କୁ ଛୁଏଁ
ଆଉ ସେଇ ବିଶେଷ ଭଲ
ହୃଷ୍ଟ ପୁଷ୍ଟ ଲୋକେ
ଛୁମନ୍ତର ହୋଇଯାଆନ୍ତି ।

ଇଏ କୋଉ ଜାଦୁ ଖେଳ ନୁହେଁ
ସତ , ଯୁବକ ବନ୍ଧୁ
ଆଉ ତା'ପୂର୍ବରୁ , ଗାଏବ ହୋଇଯିବା ଆଗରୁ
ସେ, ତମେ ଯାହାକୁ ଅନଶ୍ୱର ମନେ କରୁଛ
ଦଉଡ଼ , ଦଉଡ଼ ଏଇ ଖବର ନେଇ
ଯେ ମଣିଷର ଦୁର୍ଲ୍ଲଭ ପ୍ରଜାତି
ଗାଏବ ହୋଇ ଚାଲିଛି ।

ଯୁବବନ୍ଧୁ, ତମେ ଦଉଡ଼ି ପାରିବ
ଦଉଡ଼ ପବନବରି ଯେମିତି
ସୂର୍ଯ୍ୟ କିରଣ ଦଉଡ଼ି ଯାଏ
ଆଉ କହ
ଯେମିତି କହିଥାଏ ବିଜୁଳୀ ।
ଯେ ଲୋକେ ଗାଏବ ହୋଇ
ଚାଲିଛନ୍ତି ।
୦୦୦
ବଲାଙ୍ଗୀର
୭.୭.୨୦୧୨

## ନିଆଁ

୦

କୋଉ ବାହାରେ ନଥାଏ
ସବୁ ଦରବରେ ଥାଏ ନିଆଁ
ଆତ୍ମାପରି ଅଦୃଶ୍ୟ ଓ ଜାଗ୍ରତ
ବିରହୀ ପରି ବିଚଳିତ ଆଉ ଆତୁର।

କିଛି ବି ଦରବକୁ ଉଠେଇ ନିଅ
କୋଉଠୁ ବି
ତାକୁ ନେଇ ଆସ ନିଆଁ ପାଖକୁ
ପରଶ ପାଇଲା ମାତ୍ରକେ
ସେ ପାଲଟିଯିବ ନିଆଁ

୦୦୦

ବଲାଙ୍ଗୀର
୮.୭.୨୦୧୨

## କବିତା ଆଉ ଦୁନିଆଁ

୦

ସେଇ ଭଲ କବିତା ଲେଖିବ
ଭଲ କବି ହୋଇଥିଲେ ।
ସେ ଯେତେବେଳେ ଲେଖୁଥିବ
ସବୁଠାରୁ ଭଲ କବିତା
ସେତେବେଳ ସେ ହୋଇଥିବ
ଜଣେ ଭଲ ମଣିଷ , ଅବଶ୍ୟ ।

ଯୋଉ ଦୁନିଆଁରେ ଲେଖା ହେବ ଭଲ କବିତା
ସେଇ ହେବ ଭଲ
କବିତା ଶବ୍ଦ ଆଉ ଅର୍ଥ ନୁହେଁ
ତାହା ସବୁଠୁଁ ଏକ ସୁନ୍ଦର ସ୍ୱପ୍ନ
ସବୁଠାରୁ ଭଲ ମଣିଷର ।

୦୦୦

ବଲାଙ୍ଗୀର
୭.୭.୨୦୧୨

## ରାସ୍ତାରେ ଜଣେ ଡେଙ୍ଗା ଲୋକ

୦

ଆଜି ଦୈବାତ ଦିଶିଗଲା
ରାସ୍ତାରେ ଜଣେ ଡେଙ୍ଗା ଲୋକ
ଲୋକେ ଆପଣା ଆପଣା ଦୋକାନରୁ
ଉଣ୍ଡି ଉଣ୍ଡି ଅନଉ ଥିଲେ ତାକୁ
ଆଉ ପିଲାମାନେ ତାଳି ମାରିମାରି
ନାଚୁଥିଲେ ।

ହାବିଲଦାର ଫିସଫିସ କହୁଥିଲା
"ହଜୁର, ଥାନାର ଦରଜାଠାରୁ ବି
ଡେଙ୍ଗା ସେଇ ଲୋକଟି"

କବି ବିଶ୍ୱନାଥ ପ୍ରସାଦ ୦ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

ବିଦୂଷକ ହିନହିନେଇଲାପରି କହୁଥିଲେ
"ଜହାଁପନାହ, ଆପଣଙ୍କର ଗାଦୀରୁ ବି
ବଡ଼ ସେଇ ମଣିଷଟି ।

ଛକର ସିପାହୀ ଆଖିଫାଡ଼ି ନିରେଖୁ ଥିଲା
ବାବାରେ ! ରାସ୍ତାରେ ଏମିତି ଜଣେ ଡେଙ୍ଗା ଲୋକ ।

ସିଧା ସଳଖ ଚାଲିଥିଲା ସେ ଦୃଢ଼
ରାଜ ପଥରେ
ବେପରୁଆ ଆଉ ବିନମ୍ର ।

ସହରରେ ନିଆଁପରି ଖେଳିଯାଇଥିଲା
ସେ ଖବର
ଆପଣା ଆପଣା ଘରଟି ମାନଙ୍କରୁ
ବାହାରି ଆସିଥିଲେ ଗେଡ଼ା ଲୋକେ
ସତର୍କ ହୋଇଯାଇଥିଲେ ଖବରକାଗଜ ବାଲା
ସେନାକୁ ବି ସାବଧାନ କରେଇ ଦିଆ ଯାଇଥିଲା
ଆଉ ବିଚାର ଚାଲିଥିଲା ମନ୍ତ୍ରୀ ପରିଷଦର ।

ବୁଢ଼ୀଟିଏ, ତାର ନାତି-ନାତୁଣୀଙ୍କୁ ଜୁଟେଇ
ଦେଖଉ ଥିଲା , ସତ୍ୟଯୁଗରେ ଏମିତି ଥିଲେ
ଡେଙ୍ଗା ମଣିଷମାନେ !

୦ ୦ ୦

ବଲାଙ୍ଗୀର
୭.୭.୨୦୧୨

•

ମୃତ୍ୟୁ
୦
ମୋର ଜନମ ସାଙ୍ଗରେ
ହୋଇଥିଲା ତାର ଜନ୍ମ

ମୋରି କାୟାରେ ହିଁ
ପୁଷ୍ଟ ହୋ ଚାଲିଥିଲା ତାର ଅବୟବ ।

ମୁଁ ଜୀବନ ତମାମ ଯାହାକୁ ସଜାଡ଼ିଥିଲି
ଆଉ ଖୁସୀ ହେଉଥିଲି ଯେ
ସେ ମୋର ରକ୍ଷକ ଅସ୍ତ୍ର
ମାତ୍ର ସତ ଯେ ସେମାନେ ଥିଲେ
ତାର ହତିଆର
ଅଜେୟ ଆଉ ପୋଖତ

ମୁଁ ଜାଣୁଥିଲି ଯେ ଏଇନେ କିଛି କିଛି ଜାଣୁଛି
ଭାବୁଥିଲି ଜୟ କରି ଚାଲିଛି ଦୁର୍ଗ ପରେ ଦୁର୍ଗ
ମାତ୍ର, ଯୁଆଡ଼େ ଯେତେ ବି ବଢୁଥିଲି
ତା'ରି ପାଖକୁ ଆଉ ତାହାରି ଦିଶାରେ
ବେଶ ଦୂରକୁ ଚାଲି ଯାଇ ସାରିଥିଲା ବେଳ
ତାର ଷଡ଼୍‌ଯନ୍ତ୍ରର ଅନୁଭବ ହେଲା ବେଳକୁ।

ଶେଷ ଥର
ଯେତିବେଳେ ମୁଁ ତା'ଠାରୁ
ବଂଚିବାକୁ କରୁଥିଲି ପଳାୟନ
ଆଉ ତୀବ୍ର କ୍ଷିପ୍ରତର ଗତିରେ
ଏବଂ ମୋର ବିଚାରରେ
ସୁରକ୍ଷିତ ପହଂଚିଗଲି , ଯୋଉଠାକୁ
ସେଠାରେ ସେ ମୋର ପ୍ରତୀକ୍ଷାରେ
ରହିଥିଲା ମୃତ୍ୟୁ ମୋର ।

୦୦୦

**ବଲାଙ୍ଗୀର**
**୭.୭.୨୦୧୨**

## ସ୍ତ୍ରୀ ର ତୀର୍ଥଯାତ୍ରା

୦

ସକାଳୁ ସକାଳୁ
ସେ ମାଜି ଦେଲା
ଘର ସାରର ଅଇଁଠା ବାସନ
ଓଳା ପୋଛା କରି
ଝିଅଙ୍କୁ କୁଣ୍ଡେଇ ସଜେଇ
ପଢ଼ିବାକୁ ପଠେଇ
ଚା' ତିଆରିଲା ସବୁରିଲାଗି ।

ଯେତେବେଳେ ସାନ ପିଲା
କାନ୍ଦି ବସିଲା ଜେର-ଜୋର
ସେ ମଝିରୁ ପୂଜା ଛାଡ଼ି ଉଠି
ତାର ପରିସ୍ରା ସଫାକଲା ।

ଦି'ପହରେ ଖିଆପିଆ ଶେଷ ଶେଷ ବେଳକୁ

ଆସି ହେଲେ ଜଣେ ଅତିଥି
ଡାଲିରେ ପାଣି ମିଶେଇ କଲା
ଅତିଥି ସତ୍କାର
ଆଉ ବସିଗଲା ଚଟଣୀ ନେଇ
ବଳକା ରୋଟି ସାଙ୍ଗରେ ।

ଘଡ଼ିକସକାଶେ ସେ ଆରାମ ଲୋଡୁଥିଲା
ଯେ ଆସି ହେଲା ଝିଅ ସ୍କୁଲରୁ ମଉଳା ଚେହେରାରେ
ତାଙ୍କର ଦେଖା ଚାହାଁ ରଖା ଥୁଆ ପରେ
ପୁଣି ଯୋଚି ହୋଇଗଲା ଦଂଜ ରୋଷେଇରେ
ରାତିରେ ସବୁରି ଉତାରୁ ଖାଇ ବସିଲା
ସେତେବେଳେ ରୋଟି ସାଙ୍ଗକୁ ତରକାରୀ ବି ଥିଲା
ଯୋଉ ପରିବା ନିଜ ରୁଚିରେ କିଣି ଆଣିଥିଲା ।

ବିଛଣା ଧଇଲା ଆଗରୁ
ସେ ଏକଲା କିଛି ବେଳ କାନ୍ଦିଲା
ତ"ର ସ୍ୱର୍ଗତ ବାପାଙ୍କୁ ମନେ ପକେଇ

ତା"ପରେ ପତିଙ୍କର ବାହୁରେ ଥାଇ
ଝିଅଙ୍କର ବାହାଘର କଥା ଭାବୁଭାବୁଁ
ଗାଏବ ହୋଇଗଲା ସପନର ଦୁନିଆଁରେ
ଆଉ ନିଦରେ ଇ ପୂରା କରିନେଲା
ସବୁ ତୀର୍ଥର ଯାତ୍ରା ।

୦୦୦

ବଲାଙ୍ଗୀର
୭.୭.୨୦୧୨

କେହି ନା କେହି

୦

ମୁଁ ଥାଏଁ ନଥାଏଁ
ଅବଶ୍ୟ ଥିବ
କେହି ନା କେହି ।

ନାଆଁ ବଦଳି ଯାଏ
ବଦଳି ଯାଏ ରୂପ
ମାତ୍ର ଥାଏ

ସବୁ ସମୟ, ସବୁ ଜାଗାରେ
କେହି ନା କେହି ।

ରାସ୍ତା ତ ତଲାସିବାକୁ ପଡ଼େ ନିଜକୁ
କିନ୍ତୁ , ଦେଖେଇ ଦେଇଥାଏ
କେହି ନା କେହି ।

ଦେଖିବ
ଯେତେବେଳେ କିଛି ବି ଦୁଶିବ ନାଇଁ
ଦେଖିବ
ଯେତେବେଳେ ଗହନ ଅନ୍ଧାର ଥିବ
ଆଉ ଶ୍ୱାସରୋଧ ହେଉଥିବ ତମର
ବୁଡ଼ିଯାଉଥିବା ମଣିଷ ପରି

ଦେଖିବ
ଯୋଉଠି ଥାଅ
ସେଇଠି

ମୁଁ ଥାଏଁ ନଥାଏଁ
ଅବଶ୍ୟ ଥିବ
କେହି ନା କେହି ।
୦୦୦
ବଲାଙ୍ଗୀର
୭.୭.୨୦୧୨

**ପୁଞ୍ଜି**

୦

ଚିମୁଟାଏ ସରିକି ମାଟି
ଓଠ ଲାଗି ପାଣି
ଚିଲମ ସକାଶେ ନିଆଁ
ଦମକାଏ ପବନ।

ଏମାନେ ପୁଂଜି
ଖାଇବାର
ନେଇ ଯିବାର
ପରଦେଶକୁ ଗଲାବେଳେ।

୦ ୦ ୦

ବଲାଂଗୀର
୭.୭.୨୦୧୨

**ଜୀବନର ଅର୍ଥ**

୦

ତାହା ଅର୍ଥ ନଥିଲା
ଯଦି ଥାଆନ୍ତା
ତେବେ ଆଜି ଲାଗନ୍ତା ନାଇଁ
ବ୍ୟର୍ଥ ।

ତେବେ ତାହା କଣ ଥିଲା
ମିଛ ନା ଭ୍ରମ
ଅହଂକାର ନା ଆତ୍ମଛଳ
କଣ ଥିଲା ?

ଆତ୍ମନ୍ ମୋର
ମୁଁ ଯାହାକୁ ଲୋଡ଼ିଲି
ଆଉ ଯେ ସାରା ଜୀବନ ମିଳିଲା ନାଇଁ
ସେ କଣ ଥିଲା ?

କଣ ବ୍ୟର୍ଥରେ ନଥିଲା
ଜୀବନର ଅର୍ଥ ?

୦ ୦ ୦

**ବଲାଙ୍ଗୀର**
**୭.୭.୨୦୧୨**

## ଆମ୍ରପାଲୀ

୦

ମଂଜରୀ ଭୂଷିତ
ଏଇ ସଘନ ସୁରୋପିତ ଆମ୍ର କାନନ
ସତ୍ୟ ନୁହେଁ ଆମ୍ରପାଲୀ !
-ତାହା କହିଲେ ତଥାଗତ ।

ଝଡ଼ି ଯିବେ ଶୁକପକ୍ଷୀର ପରପରି ପତ୍ର ସବୁ
ଶୁଖି ଯିବେ ତାର ଭୁଜ ସବୁ
କିଛି ବି ସମ୍ମୋହନ ରହିବ ନାହିଁ
ପକ୍ଷୀଙ୍କସକାଶେ
ଏଇ ଆମ୍ରକୁଂଜରେ ।
- ତାହା କହିଲେ ତଥାଗତ ।

ଦର୍ପଣକୁ ପଚାରେ ଆମ୍ରପାଲୀ
ଆପଣା ଭାସର ସୁରୁଚିର ମଣିସଦୃଶ
ନେତ୍ରକୁ ପଚାରେ
ପଚାରେ ଭ୍ରମରବର୍ଣ୍ଣୀ ସ୍ନିଗ୍ଧ କୁହଚିତ କେଶଙ୍କୁ
ତୂଳିକା ଅଂକିତ ଭ୍ରୂଲତାଙ୍କୁ ପଚାରେ
ପୁଷ୍ପବାସିତ ରତ୍ନ ଭୂଷିତ ତ୍ୱଚାକୁ ପଚାରେ
ଅଧରର ବିଧୂନିତ କାମନାଙ୍କୁ ପଚାରେ
ଦେହର ସ୍ଫୁଲିଙ୍ଗଙ୍କୁ ପଚାରେ
ଆମ୍ରପାଲୀ ।

କଣ ଅନ୍ୟଥା ହୋଇ ପାରିବ ନାଇଁ
ବୁଦ୍ଧଙ୍କର ବଚନ ?

୦୦୦

କବି କୁଟୀର,ବଲାଂଗୀର ୮.୭.୨୦୧୨

**ପ୍ରୟାସ**

୦

ପୃଥ୍ୱୀ ତାର ନଥିଲା
ଯାହା ଉପରେ ସେ ଦିନେ ପଡ଼ିଥିଲା
ଆପଣାର ଯୋଡ଼ି ବେଦନା ସହିତ ।

ପୃଥ୍ୱୀ ବାନ୍ଧି ହୋଇ ରହିଥିଲା
ସୂର୍ଯ୍ୟ ଆଉ ଗ୍ରହ-ନକ୍ଷତ୍ରଙ୍କ ସହିତ

ଆଉ ସେ ତାର ପକ୍ଷଯୋଡ଼ି ଓ ଚଂଚୁ ସହିତ

ଦୁହେଁ ଘୂରି ବୁଲୁଥିଲେ
ଆପଣା ଆପଣା କକ୍ଷରେ

କବି ବିଶ୍ୱନାଥ ପ୍ରସାଦ ୦ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

ପୃଥ୍ୱୀକୁ କୁଆଡ଼େ ଯିବା ନଥିଲା
ଆପଣା ଅବିରାମ ଯାତ୍ରାରେ

ତାର କିଛି ସପ୍ନ ଆଉ ସାଦ ଥିଲା ।

ଉଡ଼ି ପାରିବ ନାଇଁ ପୃଥ୍ୱୀ , ଭାରି ଥିଲା

ସେ ତାର ଡେଣା ଫଡ଼ଫଡ଼ କରି ପାରୁଥିଲା

ସେ ପଥର ଉପରେ ମାରଲା ଥଣ୍ଟ
ପବନ , ଜଳ, ଆଉ ଖରା ସାଙ୍ଗରେ ସାଙ୍ଗ ହେଲା
ବୃକ୍ଷ ଶାଖାରେ ରଚିଲା ନୀଡ଼
ଶିକାରୀଙ୍କୁ ଡରିଡରି ଆଉ ଆହ୍ୱାନ ଦେଇ
ଅନ୍ନ କଣ ଖୁଏଇଲା ଶାବକଙ୍କୁ
ଆଉ ଦରିତ୍ରୀ ଉପରେ ଛିଞ୍ଚି ଦେଲା
ଏଣେ ତେଣେ କିଛି ମଂଜି
ପୃଥ୍ୱୀ ତାର ପଂଝାରେ ନଥିଲା
ଯାହାକୁ ସେ ଘୂରିବାରୁ
ରୋକି ନେଇ ପାରି ଥାଆନ୍ତା ।
କିନ୍ତୁ, ସେ ଚେଷ୍ଟା ବେଶ କିଛି କଲା
ତାର ଲାଲ ପାଉଁଶିଆ ଚଂଚୁରେ
୦୦୦
ବଲାଙ୍ଗୀର
୮.୭.୨୦୧୨

ପୁସ୍ତକମାନେ

୦

ନାଇଁ, ଏ କୋଠରୀରେ ନୁହେଁ
ସେପଟେ
ସେଇ ସୀଢ଼ୀ ତଳେ
ସେଇ ଗେରେଜ କୋଣକୁ ନେଇ ଯାଅ
ପୁସ୍ତକମାନଙ୍କୁ
ଏଇଠି , ଯୋଉଠି ରହି ପାରିବ ନାଇଁ ଫ୍ରୀଜ
ଯୋଉଠି ଲାଗି ପାରିବ ନାହିଁ ପୂର୍ଣ୍ଣାବୟବ ଦର୍ପଣ

ବସ୍ତାରେ ବାନ୍ଧି ମଶିଣାରେ ଗୁଡ଼େଇ
କିଛି ମେଜ ତଳେ
କିଛି ଭଙ୍ଗା ଗମଲା ଉପରେ
ରଖି ଦିଅ ପୁସ୍ତକଗୁଡ଼ିକୁ ।

ନେଇ ଯାଆ ସେମାନଙ୍କୁ ତକ୍ଷଶିଳା - ବିକ୍ରମଶିଳା
ବା ଯୁଆଡ଼େ ମନ ସେଠାକୁ
ଆମର ଉତ୍ତରାଧିକାରରେ ପୁସ୍ତକ ଲୋଡ଼ା ନାଇଁ
କିଏ ଝପଟି ପଡ଼ିବ ପାସବୁକ୍ ଉପରକୁ
କିଏ ଖୋଜିବ ଲକରର କଂଚୀ
କାହା ଆଖିରେ ଚମକିବେ ଖେତ
କୋଉଠି ପୋତା ଧନ

କବି ବିଶ୍ୱନାଥ ପ୍ରସାଦ ଠ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

:

ହାୟରେ ସମୟ
ବୁଢ଼ୀ ଜେଜେମାଁ ପରି ଉଦାସ ହୋଇଯିବେ
ପୁସ୍ତକମାନେ !

ପୁସ୍ତକକୁ
ଯୋଉଠି ବି ରଖିଦି
ସେମାନେ ପଡ଼ି ରହିବେ ଅପେକ୍ଷା କରି ।

ଆସିବ କେହି ନା କେହି
ନିଗଭ୍ରାନ୍ତ ବାଳକ ଅବଶ୍ୟ
କୌଣସି ବି ଶତାବ୍ଦୀରେ
ଅନ୍ଧାରରେ ଦରାଣ୍ଡି ଦରାଣ୍ଡି ତାର ରାହା

ତାକୁ ଛୁଇଁ ଚିହ୍ନି ନେବ
ଧୀରେ ଧୀରେ ଖୋଲିବ ଆପଣା ହୃଦ କୋଲପ
ଯୋଉଠି ଶୋଇଛି ଅନନ୍ତ ସମୟ
ଆଉ କ୍ଳାନ୍ତ ସତ୍ୟ
ଚାପି ହୋଇ ରହିଥିବା କ୍ରୋଧ
ଆଉ ମୂକ ପ୍ରେମ
ଅଇରାଙ୍କର ଗୁପ୍ତଚର
ଯାହାକୁ ତୁମେ ଧରି ପାରିଲ ନାଇଁ ।

୦୦୦

ବଲାଙ୍ଗୀର
୮.୭.୨୦୧୨

**ମଣିଷପଣ ର ଦୁଃଖ**

୦

ପ୍ରଥମ କରି ତାକୁ ଦେଖି ନଥିଲେ ବୁଦ୍ଧ
ତାର କଥା ଅନନ୍ତ

କେହି ବି ତାକୁ ପୂରା କରି କହି ପାରିବ ନାହିଁ
ସମ୍ପୂର୍ଣ୍ଣ କେହି ବି ଲେଖି ପାରିଲେ ନାହିଁ

କୌଣସି ବି ଧର୍ମରେ , କୋଉ ହେଲେ ପୋଥୀରେ
ରହିଯାଇ ପାରିଲା ନାହିଁ ପୂରାପୂରି ।

ପ୍ରତି ରୂପରେ କେତେ କେତେ ରୂପ
କେତେ କେତେ ବାହାର
ଆଉ କେତେ କେତେ ଭିତର ।

କଣ ତୁମେ ଦୁଃଖ କୁ ଦେଖିବ ବୋଲି ବାହାରିଛ ?

କବି ବିଶ୍ୱନାଥ ପ୍ରସାଦ ୦ ଉପସ୍ଥାପନା -ଡ.ଶ୍ରୀନିବାସ ଉଦ୍‌ଗାତା

କୌଣସି ଭବିଷ୍ୟବକ୍ତା ପାଖକୁ ଯିବା ଦରକାର ନାହିଁ
ନା ଡାକ୍ତରଖାନା, ନା ସହର, ନା ଗାଆଁ , ନା ଜଙ୍ଗଲ

ଯୋଉଠି ତମେ ଠିଆ ହୋଇଛ
ଦେଖି ପାରିବ ସେଠାରେ
ପାଣିପରି ବାଟ ଫିଟେଇ
ତଳକୁ ତଳକୁ
ହୁତ୍‌ହୁତ୍ ଲପଲପ
ସମୁଦ୍ରପରି ଉଦ୍‌ବେଳିତ ଦୁଃଖକୁ

କୋଉ ସମ୍ପ୍ରଦାୟ, କୋଉ ସଂଘ
କୌଣସି ଅସ୍ତ୍ର ନାହିଁ
କୋଉ ରାଜା , କୋଉ ସଂସଦ
କିଛି ଇସ୍ତାହାର ନାହିଁ।

ତୁମେ, ହଁ ହଁ ତୁମେ
କେବଳ ପାପୁଲିରେ ଚଳୁପରି ଉଛାଳି ଦିଅ
ତେବେ ହୁଏତ ଚଳୁଏ କମି ଯାଇପାରେ
ମଣିଷତାର ଦୁଃଖ ।

୦୦୦
ବଲାଂଗୀର
୮.୭.୨୦୧୨

## ଦେହ

୦

ଇଏ ସ୍ମୃତି ସମ୍ବତ୍ସରର
ତହିଁରେ ଗୁଂଜରିତ ହୋଇଥାଏ
ଜନ୍ମ-ଜନ୍ମାନ୍ତରର କଥା।

କେତେ ଲୋକ
କେତେ ଆକାଶ
କେତେ ମହାଭୂତ

କେତେ ଜ୍ୱାଳାମୁଖୀ ଅଛି
ଏଇ ଅନନ୍ତରେ।

ତାର ଅନ୍ଧାରୁ ଖାଇମାନଙ୍କୁ
ଭେଦ କରି ପାରିଲେ ନାହିଁ
ଖର୍ବ ଖର୍ବ ପ୍ରକାଶ ବର୍ଷ।

ଏହା ନଶ୍ୱର
କିନ୍ତୁ, ସେଇ ତ ମୁକ୍ତ କରିଥାଏ
ନଶ୍ୱରତାର ବୋଧରୁ

ଏହା ଦେବ କାନନ
ପାରିଜାତ ସୁଗନ୍ଧରେ ମହମହ
ଅପ୍ସରାମାନେ ଓହ୍ଲେଇ ଆସନ୍ତି
ଏହି ଦେହ ବନରେ
ଉତୁରି ଆସନ୍ତି ଦେବତା
ଆଉ ଜନ୍ମ ନିଅନ୍ତି ମହାରଥୀ
ଯାହାରି ରଙ୍ଗରେ ଚମକି ଉଠେ
ସୂର୍ଯ୍ୟ-ବଳ୍ପା
ତା"ରି ଛାତିରେ ସ୍ପନ୍ଦିତ
ହୋଇ ଥାଆନ୍ତି
ସକଳ ସଦାନୀରା
ତାର ପଲକରୁ ଝରିଥାଏ
ାସ୍ନେହର ନିର୍ଝର
ତାର ପିତୁଳୀରୁ ପ୍ରବାହିତ ହୋଇଥାଏ
କରୁଣାର ଗଙ୍ଗା।

ତାର ପାପୁଲିରେ ଯେଉଁମାନେ
ଖୋଜନ୍ତି ଭାଗ୍ୟରେଖା
ସେମାନେ ଅଭାଗା !

ତାହା ସ୍ୱୟଂ ଏକ ଜ୍ୟୋତିଲତା
ଅଦୃଷ୍ଟର ସମାନାନ୍ତର
ତାର ଅଙ୍ଗୁଳୀରେ
ଝଂକୃତ ହୋଇଥାଏ
ବୀଣା ତାର
ତା'ର ମୁଠାରେ ବନ୍ଦୀ ହୋଇ
ରହିଛନ୍ତି ସୂର୍ଯ୍ୟ,ଚନ୍ଦ୍ର, ବୃହସ୍ପତି
ସେଥିରେ ତରଙ୍ଗିତ
ଚଉଦ ରତ୍ନ ।

ଷହା ଦେହ
ତହିଁରୁ ଉକୁଟି ଥାଏ
ଦେହୀର ଅର୍ଥ
ତା'ର ଅଧରରେ ଉଦ୍‌ଭାସିତ ହୋଇଥାଏ ବାଳରବି
ତା'ର ଧ୍ୱନିରେ ଝଂକୃତ ହୋଇଥାଏ ପ୍ରକୃତି ରାଗ
ତା'ର ସ୍ମୃତିରେ ଫୁଟିଥାଏ ସହସ୍ରଦଳ
ତାହା ମହାଜ୍ୱାଳାସକାଶେ ଶତଦ୍ରୁ

ଯେ ଏଥିରେ ନାହିଁ
ସେ ବ୍ରହ୍ମାଣ୍ଡରେ ବି ନାହିଁ ।
୦୦୦
ବଲାଙ୍ଗୀର
୮.୭.୨୦୧୨

## ତଥାପି କିଛି ରହିଯିବ

୦

ତଥାପି ବି କିଛି ରହିଯିବ

ଲେଲୀହାନ ଜଳୁଛି ଚିତା
ଆଉ ଜଳୁଛି ଶ୍ମଶାନ

କିନ୍ତୁ , ମୁଁ ତମକୁ କହୁଛି
ତଥାପି ବି କିଛି ରହିଯିବ

କଣ ରହିଯିବ
ତାହା ମୁଁ ଜାଣିନାହିଁ
କେତେ ରହିଯିବ
ତାର ଅନୁମାନ ତମେ କରିନେବ

କାହାକଂ ରହିଯିବ
ତାହା ଏକ ନିରର୍ଥକ ପ୍ରଶ୍ନ !

ମୁଁ ତ ଖାଲି ଏତିକି ଜାଣିଛି
ଯେ କିଛି ରହିଯିବ
କଣ ତମର ବିଶ୍ୱାସ ହେଉଛି
ମରିଯିବେ ଜିଜୀବିଷା
ଝରିଯିବେ ଆସ୍ଥା
ଶୁଖିଯିବେ ସ୍ୱପ୍ନସବୁ
ବ୍ୟର୍ଥ ହୋଇଯିବେ ଶବ୍ଦ ।

କଣ ତମର ବିଶ୍ୱାସ ହେଉଛି
ନିଆଁ ସବୁ କିଛି ଜଳେଇ ଦେଇ ପାରେ
ସବୁ କିଛି ଶୁଖେଇ ଦେଇପାରେ ମରୁତ୍
ଜଳ ସବୁକିଛି ମିଳେଇ ନେଇ ପାରେ
ସବୁ କିଛିର ବିନାଶ କରି ପାରେ ବ୍ରହ୍ମସ୍ତ୍ର

ନା' ଅବଶ୍ୟ କିଛି ରହିଯିବ

କୋଉଠି , କେମିତି ଓ କେତେ
ତାକୁ ତ ସେଇ କହି ଦେଇ ପାରିବ
ଯେ ରହିଯିବି ।
୦୦୦
ବଲାଙ୍ଗୀର
୮.୭.୨୦୧୨



ପଦ୍ମଶ୍ରୀ ସମ୍ମାନାଳଙ୍କୃତ

## ଡକ୍ଟର ଶ୍ରୀନିବାସ ଉଦ୍‌ଗାତା, ବିଦ୍ୟାବାଚସ୍ପତି

......କବି, କଥାକାର ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ, ଅନୁବାଦକ, ବାଗ୍ମୀ, ଚିତ୍ରଶିଳ୍ପୀ, ଆପାତତଃ ୨୧୦ ପ୍ରକାଶିତ ପୁସ୍ତକପ୍ରଣେତା ତଥା ଜାତୀୟ/ପ୍ରାନ୍ତୀୟ ସ୍ତରରେ ଶତାଧିକ ପୁରସ୍କାର, ଅଭିନନ୍ଦନ ସମ୍ମାନର ଅଧିକାରୀ ଡକ୍ଟର ଉଦ୍‌ଗାତା 'କବି ବିଶ୍ୱନାଥ ପ୍ରସାଦ' ମାନଦ ପୁସ୍ତିକାର ସଂପାଦନା ତଥା କାବ୍ୟାନ୍ତରଣ କରିଛନ୍ତି । ସେ ଓଡିଆ ସାହିତ୍ୟ ଅକାଦେମୀର ପ୍ରାକ୍ତନ ସଭାପତି ଓ ସଂପ୍ରତି ଆତ୍ମପ୍ରକାଶନୀ, ବଲାଙ୍ଗିର, ସାରସତ ସାଂସ୍କୃତିକ ସଂସ୍ଥାର ଅଧକ୍ଷ ..... ଆଦି ।


ଆତ୍ମପ୍ରକାଶନୀ

କବି କୁଟୀର, ବଲାଙ୍ଗିର

ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କୃତି ନିମନ୍ତେ

୩୩ତମ ବାର୍ଷିକ ଶାରଳା ପୁରସ୍କାର ୨୦୧୨ ଅବସରରେ

ଇଣ୍ଡିଆନ୍ ମେଟାଲସ୍ ପବ୍ଲିକ୍ ଚାରିଟେବୁଲ୍ ଟ୍ରଷ୍ଟର

ସହଭାଗିତାରେ ପ୍ରକାଶିତ